# ଶିଶୁ ଖେଳା ଗୀତ



ସିଧା ଖୁଣ୍ଟ ଧର ବୁଲ ବୁଲ ଖେଳ ଚକା ଭଉଁରୀ,
ବଙ୍କାଇ ବଙ୍କାଇ ଚାଲ ଧୀରେ ବଙ୍କା ଲତାଟି ପର ।

—କାଳୀ ଚରଣ—

# କଅଣ ଅଛି ?

| | |
|---|---|
| ଢଗ | ମାସ |
| ରସ | ଋତୁ |
| ଚନ୍ଦ୍ର | ସୂର୍ଯ୍ୟ |
| ମୁଦ୍ରା | ନାଗ |
| ସମୟ | ପ୍ରଣାମ |
| ମୂଳ ବର୍ଣ୍ଣ | ଇନ୍ଦ୍ରଧନୁ |
| ଧାନଗୃଷ | ମିଶ୍ର ବର୍ଣ୍ଣ |
| ସାତବାର | ଡାକଘର |
| ଶ୍ୱଶୁର ଅଶା | ଅସତ୍ ସଙ୍ଗ |
| ଅଙ୍ଗ-ପ୍ରତ୍ୟଙ୍ଗ | ସଂଖ୍ୟା ଗଣନା |
| ରାମ ବନବାସ | ନାଲଭଙ୍ଗା ଗୀତ |
| ଡାଲଖାଇ ଗୀତ | ଲୁଚକାଳି ଖେଳ |
| ପୁଚିଖେଳ ଗୀତ | ହରଳ ଓ ବକ |
| କୃଷୀଗୀତ (ମାଟିଂ) | ଗାଈ ଜନମର ଛନ୍ଦ |



—ରଚନା—

କାଳୀ ପଟ୍ଟନାୟକ

—

—ପ୍ରକାଶ—

ଛାତ୍ରବନ୍ଧୁ ପୁସ୍ତକାଳୟ

ନୟାସଡ଼କ—କଟକ (୨)

—

—ସଂସ୍କରଣ—

ଦ୍ୱିତୀୟ

—

—ମୂଲ୍ୟ—

ଛଅ ଅଣା

—

୧୯୫୩

—୦—

# ଶିଶୁଖେଳା ଗୀତ

## ପ୍ରଣାମ

ଘେନ ମୋ ପ୍ରଣାମ ପ୍ରଭୁ ଭଗବାନ,
ମୁଁ ଅଟେ ବାଳକ ଅବୋଧ, ଅଜ୍ଞାନ ।
ନୀଳ ଆକାଶରେ ସୂର୍ଯ୍ୟ, ଚନ୍ଦ୍ର, ତାରା
ଶରତ, ବସନ୍ତ, ବର୍ଷା, ଶୀତ, ଖରା ।
ସାଗର ପର୍ବତ ନଦୀ ଝର ବନ
ପଶୁ ପକ୍ଷୀ କୀଟ ତରୁ ଲତାଗଣ ।
ପିତା ମାତା ଭ୍ରାତ ବନ୍ଧୁ ଗୁରୁଜନ
ଏ ଜଗତେ ସବୁ ତୁମ୍ଭର ଭିଆଣ ।
ତୁମ୍ଭ ଆଜ୍ଞାବଳେ ଚଳଇ ସଂସାର
ତୁମ୍ଭ କରୁଣାର ନାହିଁ ପରାନ୍ତର ।
ଦିଅ ସଦ୍‌ବୁଦ୍ଧି ଦିଅ ଦିବ୍ୟଜ୍ଞାନ
ପ୍ରଭୁ ହେ ! ପବିତ୍ର କର ଏ ଜୀବନ ।

# ଦିଗ

ଯେଉଁ ପଟୁ ସୂର୍ଯ୍ୟ ଉଇଁ ଆସନ୍ତି ସକାଳେ
ସେ ପଟକୁ ପୂର୍ବ ଦିଗ କହନ୍ତି ସକଳେ । ୧ ।
ପୂର୍ବକୁ ଅନାଇଁ ରହି ଦିଗମାନ ଚିହ୍ନ
ଡାହାଣ ହାତ ବଢ଼ାଅ, ସେ ଦିଗ ଦକ୍ଷିଣ । ୨।
ବାଆଁ ହାତ ଯେଉଁପଟେ ସେ ଦିଗ ଉତ୍ତର
ପଶ୍ଚିମ ଦିଗ ହୋଇବ ନିଜ ପିଠିପଟ । ୩ ।
ସୂର୍ଯ୍ୟ ଗଲେ ଏ ଦିଗକୁ ଦିନ ଯାଏ ସରି
ବେଳ ବୁଡି ଯାଏ, ପଛେ ଅନ୍ଧକାର ମାଡ଼ି । ୪ ।
ମଥା ଉପରଟି ଊର୍ଦ୍ଧ୍ୱ ଅଧଃ ପାଦତଳେ
ଦଶ ଦିଗ ଏହିପରି ମନେ ରଖ ଭଲେ ।୫।

---

# ସମୟ

ଷାଠିଏଟି ସେକେଣ୍ଡରେ ମିନିଟ ଗୋଟିଏ,
ଏକ ଘଣ୍ଟା ହେବ ହେଲେ ମିନିଟ ଷାଠିଏ ।
ଦିନଯାକ ବାର ଘଣ୍ଟା, ବାର ଘଣ୍ଟା ରାତ
ଚବିଶ ଘଣ୍ଟାରେ ଦିନ ଗୋଟିଏ କହନ୍ତି ।
ଦିନକ ଷାଠିଏ ଦଣ୍ଡ, ଅଠଟି ପହର
ଏ ସବୁ ଖୋଜିବା ପଢ଼ିଲ ନାହାକ ବୁଝିବାର ।

ସାତ ଦିନ ମିଶି ଏକ ସପ୍ତାହ ହୁଅଇ
ପନ୍ଦର ଦିନକୁ ଏକପକ୍ଷ ବୋଲି କହୁ ।
ଦୁଇ ପକ୍ଷେ ଏକମାସ, ଦିନଟି ତିରିଶ
ବାରମାସେ ଏହିପରି ଏକବର୍ଷ ଦିଶେ ।
ବାର ବରଷରେ ଯାଏ ଏକ ଯୁଗ ପୂରି
ଦିନ, ମାସ, ବର୍ଷ, ଯୁଗ ଗଣ ଏହିପରି ।

---

## ସାତବାର

ସପ୍ତାହର ସାତବାର,
ପ୍ରଥମ ଦିନକୁ ରବିବାର କହୁ
ତହୁଁ ପର ସୋମବାର ।
ସୋମବାର ସ୍ତପାଦେ
ତହୁ ପରଦିନ ସକାଳ ହୋଇଲେ
ମଙ୍ଗଳବାରଟି ହୁଏ ।
ତହୁଁ ପରେ ବୁଧବାର,
ବୁଧବାର ଗଲେ ଗୁରୁବାର ପଡ଼େ
ତା ପଛକୁ ଶୁକ୍ରବାର ।
ଶେଷ ହେଲେ ଶୁକ୍ରବାର
ତହୁଁ ପର ଦିନ ଶନିବାର ହୁଏ
ସପ୍ତାହର ଶେଷବାର ।

# ମାସ

ବରଷର ଆଦ୍ୟ ମାସ ନାମ ବଇଶାଖ
ଜ୍ୟେଷ୍ଠମାସ ତହୁଁ ପରେ ଆସେ ଦେଇ ଦୁଖ
ଆମ୍ବ ଜାମୁ ଲିଚୁ ପାଚେ, ପାଚଇ ପଣସ
ଏ ଦୁଇ ମାସରେ ଚୋଷା ଚାଖଇ ସରସ ।

ତହୁଁ ପରେ, ଆଷାଢ଼ ଶ୍ରାବଣ ଦୁଇମାସ
କଳା ମେଘ ଘୋଟିଯାଏ ବୃଷ୍ଟି ହସହସ
ବିଜୁଳି ଚମକେ ମେଘେ ମାରେ ଘଡ଼ଘଡ଼ି
ଡାହୁକ ଡାକଇ ବନେ, ବେଙ୍ଗ ଛାଡ଼େ ରଡ଼ି ।

ବରଷା ଶେଷରେ ମାସ ଭାଦ୍ରବ ଆସଇ
ଖଣ୍ଡ ଖଣ୍ଡ ଧଳାମେଘ ଆକାଶେ ଭାସଇ
ବର୍ଷଣ ନଥାଏ ମେଘେ ଇନ୍ଦ୍ର ଧନୁଥାଏ
ଆଶ୍ୱିନ ମାସଟି ତହୁଁ ପଛେ ଆସିଯାଏ ।

କାର୍ତ୍ତିକ ମାସରେ ପାଳି ପଡ଼େ ତହୁଁ ପରେ
ହିଅସ୍ତ୍ର ସୁନ୍ଦର ଦିଶେ ନାନା ଫୁଲ ଫଳେ
ମାର୍ଗଶୀର ଆସିଗଲେ ମାଡ଼ିଆସେ ଜାଡ଼,
ବହୁତ ଡାକର ପଡ଼େ ଥର ଉଠେ ହାଡ଼ ।

ପଉଷ ମାସରେ ଖୁସି ପୁଲକିତ ମନ
ସୁନା ଫୁଲପରି କ୍ଷେତେ ପାଚିଯାଏ ଧାନ
ଉଗ୍ରା ଛୁଏ କେମ ଶୀତ ଗଲେ ମାଘ ମାସ
ଶ୍ରୀପଞ୍ଚମୀଠାରୁ ଲାଗେ ମଳୟ ପରଶ ।

ତରୁଲତା ଫୁଲନ୍ତଇ ଫାଲଗୁନ ମାସେ
ଦଗ ମହକଇ ଅମ୍ବ ବଉଳର ବାସେ,
ଚୈତ୍ର ମାସେ ଜଗତକୁ ବାଧେ ଝାଂଖରା
ଝାଞ୍ଜିରେ ଦୁଃଅନ୍ତି ପଶୁପକ୍ଷୀ ନରମରା ।
ଏରୂପରେ ବାରମାସେ ପୂରଇ ବରଷ
ଛଅଋତୁ ଭୋଗକରେ ଦୁଇ ଦୁଇ ମାସ ।

---

## ଋତୁ

୧ମ— ମୁହିଁ ଗ୍ରୀଷ୍ମଋତୁ, ଯେବେ ଧରାକୁ ଆସଇ
ଚଣ୍ଡ ଦଗ ଖରାରେ ମୁଁ ଜାଳିପୋଡ଼ ଦେଇ ।
ନଈ ନାଳ ଖାଲ ବିଲ ପୋଖରୀ ଶୁଖିଲା
ବଡ଼ବଡ଼ ଗଛଲତା ଝାଉଁଳି ପଡ଼ିଲା ।
ବହିଲା ଝାଞ୍ଜି ପବନ ଦେହ ଗଲା ତାତି
ଦେଶ ସାରା ଯେତେ କି ଅଛି ଫାଟିଯାଏ ଛାତି ।
ବଇଶାଖ ଜ୍ୟେଷ୍ଠ ଦୁଇ ମାସ ମୁହିଁ ଥାଏ
ଜଗତରେ ଗ୍ରୀଷ୍ମଋତୁ ନାମଟି ବୋଲାଏଁ ।

୨ୟ— ମୁହିଁ ଦେଖ ଆସିଅଛି ମୁହିଁ ବର୍ଷାକାଳ
କାହିଁ ପାଇଁ ଅଛ ମିଛେ ଜଳ ଲାଗି ଭାଳ ?
କଳାମେଘ ଘୋଟିଗଲା, ପାଣି ବରଷିଲା
ଘଡ଼ଘଡ଼ ରଡ଼ ସଙ୍ଗେ ବିଜୁଳି ଖେଳିଲା ।

ଫୁଟିଲା କଦମ୍ବ, କୃଷ୍ଣ ଫୁଲ ନାନା ଜାତି
ନଈ ନାଳ ଜଳ ପାଇ ଫୁଲିଉଠେ ଘାଟି ।
ଅଷାଢ଼ ଶ୍ରାବଣ ଦୁଇମାସ ମୋ ସଙ୍ଗତ,
ଭେଟାଇଲି ସୃଷ୍ଟିମଣ୍ଡେ ମୁହିଁ ସୁନ ଛାତ ।

୩ୟ— ବର୍ଷା ପରେ ଧରାକୁ ମୁଁ ଆସିଛୁ ଶରତ,
ଭାଦ୍ରବ ଆଶ୍ୱିନ ଦୁଇ ମାସ ମୋ ସଙ୍ଗରୁ
ସରୋବର ନୀଳ ଜଳେ କୁମୁଦ ଫୁଟିଲା
ଗଙ୍ଗଶିଉଳି ବାସରେ ଦିଗ ମହକିଲା ।
ଖଣ୍ଡ ଖଣ୍ଡ ଧଳା ମେଘ ଭାସିଲା ଆକାଶେ
ନିର୍ମଳ ଚନ୍ଦ୍ରମା ତହିଁ ମଧ୍ୟରେ ପ୍ରକାଶେ ।
ବଢ଼ାଇଲି କାଶତରୁ ମୁହିଁ ନୂଆ ଧାନ,
ମୋ ଲାଗି ଧରା ଦେବୀ ପୁଲକିତ ମନ ।

୪ର୍ଥ— କାର୍ତ୍ତିକେ ହେଲି ମୁଁ ଦେଖା ହେମନ୍ତ ମୋ ନାମ
ମାର୍ଗଶୀର ଶେଷ ଯାଏ ମୁହିଁ ବଳବାନ ।
ଖରା ହେଲା କମ ଜାଣ, ପଡ଼ିଲା କାକର
କାର୍ତ୍ତିକ ସରିଲା, ଶୀତ ବଢ଼ିଲା ଏଥର ।
ପାହାନ୍ତା ପହରେ ଘାସ ପତ୍ରଅଗ୍ରେ ଅନା
କାକର ବିନ୍ଦୁ ମୁକୁତ ପ- ଦିଶେ ପିନା !
କଢ଼େଇଲା ପଦ୍ମବନ ପୋଡ଼ ଶୁଳଗାର
ଚଉଦିଗେ ଫୁଟାଇଲି ଧଳେ ଝରେ ।

୫ମ— ମୋ ନାମ ଶିଶିର, ହେମନ୍ତର ସାଥୀ ମୁହିଁ,
ରହିବି ଜଗତେ ପୌଷ ମାଘ ମାସ ଦୁଇ ।

ମୁଁ ଆସନ୍ତେ ଗଡ ବଡ଼ି ଦିନ ହେଲା ସାନ
ଆନନ୍ଦେ କାଟିଲେ କୃଷୀ କଅଗ୍ରୁ ଧାନ ।
ଶୀତରେ କମ୍ପି ଉଠିଲା ଏ ସାରା ସଂସାର
ଶୀତ-ଲୁଗା ଘୋଡ଼ି ହେଲେ ସରବେ ଏଥର ।
ବଡ଼ିଗୁରେ ନାନା ଜାତି ପରିବା ଫଳିଲା
ଖାଇ ସାରି କୃଷୀ ରଖେ ଯେତକ ବଳିଲା ।

ବସୁ— ଶୀତଙ୍କ ପାଛୁଛ କିଏ ଆସିଅଛି ମୁହିଁ ?
ବସନ୍ତ ମୁଁ, ଫାଲଗୁନ ଚଇତେ ଆସଇ ।
ପଲାଶ ରଙ୍ଗ ଫୁଲରେ ମଣ୍ଡି ହୋଇଗଲା
ଆମ୍ବଗଛ ବଉଳିଲା, କୋଇଲି ଗାଇଲା ।
ମଳୟ ବହିଲା ଦିଗ ମହକି ଉଠିଲେ
ମଲ୍ଲୀ, ନାଗେଶ୍ୱର, ଚମ୍ପା, କୁସୁମ ଫୁଟିଲା ।
ଛଅ ଋତୁ ମଧ୍ୟେ ଋତୁରାଜ ମୋର ନାଆଁ
କି ସୁନ୍ଦର ସଜାଇଛି ଜଗତକୁ ମୁହିଁ ।

---

## ଅଙ୍ଗ-ପ୍ରତ୍ୟଙ୍ଗ

ଏଠୁ ଦେଖ ମୁଣ୍ଡ ମୋର
କଳା କଳା ହୋଇ କି ସୁନ୍ଦର କେଶ
ଶରୀର ଉପରେ ସାର ।
ମୁହଁଟି ମୋହର ଏଠୁ,
କିଏ ମୁହିଁ ଅବା ଛି ନାମ ମୋହର
ଚିହ୍ନାଇଁ ଦିଅଇ ଠିକୁ ।

ଏଇ ଦୁଇଟି ମୋ ଆଖି,
ଏ ଆଖି ଥିବାରୁ          ସୁନ୍ଦର ଜଗତ
ପାରୁଅଛୁ ମୁହିଁ ଦେଖି ।

ଆଖିତଳେ ଏଟି ନାକ,
ଫୁଲର ସୁବାସ,          ପଚ୍ଚ ସଢ଼ା ଗନ୍ଧ
ବାରିପାରେ ସବୁ ଯାକ ।

ହେଇଟି ମୋହର ପାଟି,
କଥା କହେଁ, ଜିଭେ          ଖଟା ମିଠା ଗୁଣେଁ
ଚୋବାଏ ଦାନ୍ତ ଦି ପାଟି ।

ଦୁଇପାଖେ ଦୁଇ କାନ,
ଦୁଇଟି ଆଖିର          ସମାନରେ ରହି
ଶୁଣଇ ଶବଦମାନ ।

ବେକଟି ତାହା ତଳକୁ,
ସେହି ବାଟେ ମୁହିଁ          ଅହାର ଗିଳଇ
ଟେକି ଧରନ୍ତି ମଥାକୁ ।

ଦୁଇପାଖେ କାନ୍ଧ ଥାଇ,
କାମ କରିବାକୁ          ବିଧାତା ଦେଇଛି
ତହିଁରେ ହାତ ଲଗାଇ ।

ଅଙ୍ଗୁଠି ହାତ ଅଗରେ,
ପ୍ରତି ହାତରେ ମୋ          ପାଞ୍ଚଟି ଅଙ୍ଗୁଠି
ଦଶ କାମ ସବୁ କରେ ।

କାଚନଳେ ମୋର ଗଳତ,
ଭିତରେ ନିଃଶ୍ୱାସ   ପ୍ରଶ୍ୱାସ ବହୁଛି
ସତେକି କମାର ଭସ୍ତ ।

ପେଟ ଟି ଚଳଲୁ ତାର,
ହଜମ କରିବ   ଖାଇବା ଜିନିଷ
ପେଟର ଏହୁ ବେପାର ।

ପଛ ଅଡ଼େ ମୋର ପିଠି,
ଦୁଇ ଭାଗ ତାକୁ   କରି ଦେଇଅଛି
ମଝି ମେରୁଦଣ୍ଡ କାଠି ।

ପିଠିକି ଲାଗିଛି ଅଣ୍ଟା,
ଅଣ୍ଟାଠି ପାଖରୁ   ସଳଖେ ଲମ୍ବିଛି
ଏହୁ ମୋ ଗୋଡ଼ ଦୁଇଟି ।

ପାଦ ଦୁଇଟି ଗୋଡ଼ରେ,
ସେହୁ ଯୋଡ଼ିକରେ   ଯେତେଣେ ଇଚ୍ଛା ତେତେଣେ
ବୁଲଚାଲ ମୁହିଁ କରେଁ ।

—o—

## ସରଳ ଓ ବଙ୍କ

ସରଳ ସଳଖ ତାଳ ଗଛ ଦେଦେ ମାଡ଼ୁଛି ଲତା
ବଙ୍କା ବଙ୍କା ହୋଇ ଗୁଡ଼େଇ ହୋଇଛି ଦେଖ ତା ଭଙ୍ଗୀ ।
ବଙ୍କୁଲି ବାଡ଼ର ମୁଣ୍ଡକୁ ଅନାଅ ସେପରି ବାଙ୍କ
ଭଙ୍ଗାରୁ ଲମ୍ବିଛି ଉପରକୁ ହେଲେ ସେଭଳି ଢଙ୍ଗ ।
ଗାଈ ଚରୁଆଳ ହାତେ ଧରିଥାଏ ବାଉଁଶ କାଠି
ଅଗଠାରୁ ତାର ମୂଳ ଯାଏ ସିଧା ସଳଖ ଛାଟି ।
ବଙ୍କା ଇନ୍ଦ୍ରଧନୁ ଅଗସ୍ତି ଫୁଲଟି, ବଙ୍କା—ତେନ୍ତୁଳି
ଦ୍ୱିତୀୟା ତୃତୀୟା ଜହ୍ନ ଦେଖିଥିବ ବଙ୍କା କିପରି ।
ସିଧା କଞ୍ଚାଠ, ସିଧା ଘରଟୁଣ୍ଡ ସରଳ ରେଖା
ବଙ୍କାଇ ବଙ୍କାଇ ଚାଲ ବୁଲି ବୁଲି ପାହୁଣ୍ଡ ପକା ।

---

## ଇନ୍ଦ୍ରଧନୁ

ଘଡ଼ ଘଡ଼ ଘସେ ମେଘ ନେଳିଅ ଆକାଶେ
ହେତେ ବଡ଼ ଇନ୍ଦ୍ରଧନୁ ସାତରଙ୍ଗେ ଦିଶେ ।
ମେଘରେ ଯେଉଁ ଦିଗରେ ସୂର୍ଯ୍ୟ ରହୁଥାଏ
ତାହୁଁ ଆଗ ପଟେ ଇନ୍ଦ୍ର ଧନୁ ଦେଖା ଯାଏ ।
କିଏ କହେ ଇନ୍ଦ୍ରଧନୁ, କିଏ ରାମଧନୁ
ଥରେ ଦେଖିଥିଲେ ଏହା ନ ପାଶୋରେ ମନୁ ।

ଡାଲି ନେଲା  ବାଇଗଣି ହଳଦୀ ଧୂସର
ସାଗୁଆ ନାରଙ୍ଗୀ ସାତରଙ୍ଗେ କି ସୁନ୍ଦର ।
କି ବଣିଜ ସଜେ ଆହା ବଧ ତା ନ୍ୟଅଣ
ଭକ୍ତିଭରେ କର ତାଙ୍କ ଚରଣ ବନ୍ଦନ ।

———

## ରସ

ଖଟା, ମିଠା, ପିତା, ଲୁଣି, କଷା, ରାଗ, ଛଅ
ଷଡ଼ରସ କହନ୍ତି ମନେ ରଖିଥାଅ ।

ଖଟା— ଖଟା ଲାଗେ କରମଙ୍ଗା, କାଗଜି, ନାରଙ୍ଗ
ତେନ୍ତୁଳି, ଲେଖଜକୋଳି, ଟଭା, ମାତୁଳଙ୍ଗ ।
ଜରକୋଳି, କଞ୍ଚାଅମ୍ବ, ଅମ୍ବୁଲ ଅମ୍ବିଳ
ଏ.ଟି ଯେଗେ ଦେଖାଇଲେ ଜିଭ୍ରୁ ବହେ ଲାଳ ।

ମିଠା— ମିଠା ଲାଗେ ଗଜା, ଖଜା, ସାକର, କାକସ
ମୁଆଁ, ସରପୁଳି, ଖିର, ଲଡୁ, ଚାନ୍ଦକୋରା
ଗୁଡ଼, ମିଶ୍ରି, କ୍ଷିସିମଣ୍ଡେ, ନବାତ, ଖଜୁରି
ଛେନା, ଖଇ, ମଣ୍ଡାପିଠା, ଚା.ଡଲା ବସ ।

ପିତା— ବଡ଼ ପିତା ନିମ୍ବ, ଦାସକେରେଣ୍ଡା, କଲରା,
ଭୁଇଁନିମ୍ବ, ଚିରେଇତା, ପିତା ତଳେ ଗଲା ।
ପିତା ଲାଗେ ଗୃଖିଛ କି କୁଇନାଇନକୁ
ପିତା ହେଲେ କିସ ହେବ ଛଡ଼ାଏ ଜରକୁ

ଲୁଣି— ଚାଖିଲେ ଲୁଣିଆ ଲାଗେ ସମୁଦ୍ରର ପାଣି
ଲୁଣ ବୋଲି, ସଇନ୍ଧବ ଲୁଣ ; ଲାଗେ ଲୁଣି
ଗୋଡ଼ା ଆଉ ପଙ୍କାଲୁଣ ଲୁଣିଆ ସମସ୍ତେ
ସ୍ୱାଦ ରସ ବୋଲି ତାକୁ କହନ୍ତି ଜଗତେ ।

କଷା— କଷା ଲାଗେ ବେଲକୋଳି କଷି ନରକୋଳି
କଷି କଦଳୀ ଟି କଷା, କଞ୍ଚା ଜାମୁକୋଳି
ହରଡ଼ା ଲାଗଇ କଷା, ଅଁଳା ତ କଷା
ଖଣ୍ଡା ଦେଲେ ଫଳ ଲାଗେ କଷିବେଲେ କଷା ।

ରାଗ— ରାଗ ତ ଲଙ୍କା ମରିଚ, ଧାନୁଆଁ ମରିଚ,
ରାଗ ଲାଗେ ଅଦା, ଆଉ ରାଗ ଲାଗେ ବଚ,
ଭୃଙ୍ଗପୋଡ଼ା ବୋଲି ରାଗ, ରାଗ ତ ପିପ୍‌ପଳୀ
ଲବଙ୍ଗ, ଗୋଲ୍‌ମରିଚ ଭୃଙ୍ଗ ଦିଏ ଜାଳି ।

---

## ମୂଳ ବର୍ଣ୍ଣ

ରକ୍ତ— ଉଦୟ କାଳରେ ସୂର୍ଯ୍ୟ ନାଲି ଟହ ଟହ
ସେହିପରି ନାଲି ଆଉ କି ଦେଖିଛ କହ ?
ବସନ୍ତ ଋତୁରେ ଫୁଟେ ପଳାଶର ଫୁଲ;
ଦେଖିଥିବ ନାଲି ତାହା ଜବାଫୁଲ ତୁଲ ।
ଚିନା ସିନ୍ଦୁର ନାଲିଆ; ନାଲି ସାଧୁ ଲାଲ
ସେହିପରି ନାଲି ଦିଶେ ଅଲତା, ଅବିର ।

ପୀତ— ହଳଦିଆ ଚମ୍ପାଫୁଲ୍ ଭଳିଆର ଫୁଲ୍
ସେହିପରି ହଳଦିଆ ଅଛି କି ବହୁଳ ?
ହଳଦିଟି ହଳଦିଆ; ସୁନା ହଳଦିଆ
ହଳଦୀବସନ୍ତ ପକ୍ଷୀ ଦେଖ ସେ ଭଳିଆ ।
ହରିତାଳ ଗନ୍ଧକକୁ ଯଦି ଖୋଜିବ
ଏ ଦୁଇ ପଦାର୍ଥ ରଙ୍ଗ ହଳଦି ଦିଶଇ ।

ନୀଳ— ଯେଉଁଠିକି ଆଖି ଅଡ଼ ଜମା ପାଉନାହୁଁ
ଚାହୁଁଲ ସେ ଆକାଶକୁ କି ରଙ୍ଗ ଦିଶଇ ?
ସେହିପରି ନୀଳ ଦିଶେ ସମୁଦ୍ରର ପାଣି
ନୀଳବଡ଼ି ନେଳୀ ରଙ୍ଗ ଧୋବା ନିଏ କିଣି ।
ମୟୂର କଣ୍ଠ ଦେଖିଛ କି ଚକଚକିଆ
କେଡ଼େ ସୁନ୍ଦର ତା ରଙ୍ଗ ଦିଶଇ ନେଳିଆ ।

---

## ମିଶ୍ରବର୍ଣ୍ଣ

ନାରଙ୍ଗୀ - ମନେରଖ ନାଲି, ହଳଦୀ, ନୀଳ
ରଙ୍ଗର ଭିତରେ ତିନୋଟି ମୂଳ ।
ନାଲି ହଳଦିଆ ହୋଇଲେ ସଙ୍ଗ
ଦୁହେଁ ମିଶି ହେଲେ ନାରଙ୍ଗୀ ରଙ୍ଗ ;
ପାଚିଲ କମଳା ଦେଖିଛ ଭାଇ
ନାରଙ୍ଗ ନାରଙ୍ଗୀ ରଙ୍ଗ ଦିଶଇ ।

ବାଇଗଣୀ— ନାଲି ନେଳୀ ଦୁହେଁ ଗାଧୋଇ ଗଲେ
ଦୁହେଁ ମିଶି ବାଇଗଣୀ ହୋଇଲେ ।
ଭଲା ବାଇଗଣ ଯାହାକୁ କହୁ
ବାଇଗଣୀ ରଙ୍ଗ ଅଛଇ ସହୁ ।

ଖାଗୁଆ— ନେଳୀ ହଳଦିଆ ଦୁହେଁ ମିଶିଲେ,
ଖାଗୁଆ ରଙ୍ଗକୁ ବାହାର କଲେ ।
ଭଅଁଳ ଦୁବର ରଙ୍ଗ ଖାଗୁଆ
ନୂଆ ପତରଟି ଏହୁ ଜାତଅ ।

କଳା— ନାଲି, ହଳଦିଆ, ନେଳୀ ମିଶିଲ,
କଳା ରଙ୍ଗ ତହୁଁ ବାହାର ହେଲ ।
ଦେହ କଳା ଜାଣ କୋଇଲିଙ୍କର
ସେହିପରି ପିନ କଳା ଭଅଁର ।

ପାଣ୍ଡୁର— କଳା ହଳଦିଆ ମିଶି ପାଣ୍ଡୁର
ପାଚିଲା କଇଥ ଖୋଳ ପ୍ରକାର ।

ଧଳା— ଟଗର, କାମିନୀ, ମାଲତୀ, ଯୂଇ,
ମଲ୍ଲୀ, ଜାଇ, କୁନ୍ଦ ଧଳା ଦିଶଇ ।

ଗୋଲାପୀ— ନାଲିଆ ଧଳକୁ ଦିଅ ମିଶାଇ
ଗୋଲାପି ରଙ୍ଗଟି ମିଳିବ ଯାଇ ।

---

# ସୂର୍ଯ୍ୟ

କହନ୍ତ କିଏ ସେ ସୂର୍ଯ୍ୟ ?
ପୂରୁବ ଆକାଶେ ସିନ୍ଦୂର ସାଜିକେ
ସାହାନ୍ତାରୁ ଆସେ ଚଢ଼ି । ୧ ।

ବହଇ ଶୀତଳ ବାଆ,
ଆକାଶ ଢୁଲୁଡ଼ା କଳିକା-ପାଖେ
ବାଉ ତାଳେ ବାଅ ବାଅ । ୨ ।

ଥାଳି ପରିପରି ଦିଶେ,
ସରୁ ସରୁ କେଳ ଅଧିକ ତୁଅନ୍ତି
ମଝି ଆକାଶରେ ବସେ । ୩ ।

ଭାବ ଚାଣ ମୋର ଖସି,
ମେଦୁଅ ନେଇହୁଲେ କିଏ ଦିସେ ମୋ ଆଗେ
ଗୃହ ବ, ଦେଖିବା ଭଲ ? ।୪।

ବେଲବୁଡ଼ ସରୁ ହୁଏ,
ଆକାଶ ମଝିରୁ ଧୀରେ ଧୀରେ ଖସି
ସନ୍ଧ୍ୟାରେ ଅସ୍ତ ଯାଏ । ୫ ।

ସକାଳରୁ ସଞ୍ଜ ଯାଏ,
ଆକାଶରେ ଥାଇ ଆଲୋକ ଦିଏ ସେ
ମୋତେ ନ ଚିହ୍ନିଲୁ କିଏ ? ।୬।

---

## ଚନ୍ଦ୍ର

ଚିହ୍ନି ପାରୁଛ ମୁଁ କିଏ ?
ଜଗତ ସାରର ଜହ୍ନମାମୁଁ ମୁହିଁ
ରାତିରେ ଆକାଶେ ଉଏଁ । ୧ ।

ଶୁକ୍ଳ ପକ୍ଷରେ ବଢେ
ପୂର୍ଣ୍ଣିମାରେ ଦିଶେ ରୂପା ଚକପରି
ଅନ୍ଧାର ପକ୍ଷରେ ଝଡ଼େ । ୨ ।

ଶୀତଳ କିରଣ ମୋର
ସମସ୍ତଙ୍କୁ ଭାରି ସୁଖ ଲାଗେ ବୋଲି
କରନ୍ତି ମୋତେ ଆଦର । ୩ ।

ଆକାଶରେ ବୁଲି ବୁଲି,
ପାହାନ୍ତିଆ ହେଲେ କେହୁ ନ ଜାଣଇ
କେଉଁ ଆଡ଼େ ଯାଏ ଚାଲି । ୪ ।

———

## ତାରା

ଚିହ୍ନିଲ ଆମକୁ ସତେ ?
ସଞ୍ଜ ହେଲାକ୍ଷଣି ଗଣିକି ପାରିବ
ଆକାଶରେ ଆମେ କେତେ ? । ୧ ।

କଏ ବଡ଼ କଏ ସାନ,
ସଙ୍ଗି-ସାଥୀ ଅମେ          ଘରସାରା ଥାଉଁ
ସବୁକାଳେ ନ ଥାଏ ଶତ୍ରୁ । ୨ ।

ଅମକୁ କହନ୍ତି ତାରା,
ମିଠି ମିଠି ଚାହୁଁ          ହସି ଖେଳୁଥାଉଁ
ଅକାଶରେ ଅମେ ତାରା । ୩ ।

———

## ଶିଶୁର ଆଶା

ବଢ଼େଇ—   ବଡ଼ହେଲେ କାଠ କାମ କରିବ
ଭଲଭଲ କାଠ ବାଛି ଆଣିବ ।
ଚଉକି ପଲଙ୍କ ଗଢ଼ିବ ବସି
ଚକ୍‌ଚକ କରିବ ରନ୍ଦାକୁ ଘଷି ।
ରହିଥା ରହିଥା ଭାଇ,
ବଜାରରେ ମୋର          ଆଦର ଦେଖିଲେ
ହେଉଥିବ ହାଇଁପାଇଁ ।

କମାର—   ଉଣା କି ମଣିଛ କମାର କାମ
'ମୋହର ତ ଭାଇ ତହିଁରେ ମନ ।
ଇସ୍ପାତ ଲୁହା ମୁଁ ବାଛି ଆଣିବ
କୋଡ଼, କାଙ୍କ, ଛୁରୀ, ଦାଆ ଗଢ଼ିବ ।
ରହିଥା ଭାଇ ଦେଖିବ,'

ଦୂଆରେ ମୋହର ଛନ୍ଦସ ନେବାକୁ
କେତେ ଭିଡ଼ ଲାଗିଥିବ ।

ବଣିଆ— ବଣିଆ ଢାମରେ ମନ ମୋହର
କହିବ ସୁନା ମୁଁ କେଉଁଟି ଧର ।
ଗୋଟିଏ ସୁନାରେ ମୁଁ କର ପାଇଛି
ଖଞ୍ଜିବ ମୁକୁତା ଗୋଟିକ ଗୋଟି,
ସବୁ ତାରକସି କାମ
ବଜାରେ ଖୋଜିଲେ, ବଜାରେ ନ ଥିବ
ପଡ଼ୁଥିବ ମୋର ନାମ ।

ଗୁଡ଼ିଆ— କହିବ ଭାଇ ମୁଁ ଗୁଡ଼ିଆ କାମ
ତାକୁ ବଳା ହେବ ମୋହର ନାମ
ଖାଣ୍ଟି ଘିଅ, ଭଲ ଛେନାରେ ଭାଜ,
କରିବ ମୁଁ ନାନା ଜାତି ମିଠାଇ
ବଜାରକୁ କିଏ ଯାଏ ?
ସଞ୍ଜ ସକାଳରେ ଦୁଆରେ ଦେଖିବ
ଟଙ୍କା ପଇସା ଗଦାଏ ।

ତନ୍ତୀ— ତନ୍ତୀ କାମରେ ମୋ ମନଟି ଅଛି
ନୂଆ ଢାଞ୍ଚ ଲୁଗା ବୁଣିବ ବାଛି ।
ଭଲ ଧଡ଼ି ଶାଢ଼ୀ ପଞ୍ଚମ ରଙ୍ଗରେ
ବୁଣିବ କପଡ଼ା କେତେ ଢଙ୍ଗରେ
ଦେଶ ବିଦେଶରେ ନେବେ

ମୋଦଠାରୁ ଶିଖି                    ଦେଶସା·ଚଳଇ
ତେବେ ଲୋକ ଘୋଷି ହେବେ ।

ଲଗାବୃଣା ତଥା କହୁଲ ଶୁଭ
ମୂଳ ଅନ୍ଧୁ ମରେ ଭାବିଲ ନାହିଁ
ବୃଣିବା ଲଗି ତ ଲୋଡ଼ିବ କଷା
କଷା ଗୃହ୍ଣ କଲେ ବଢ଼ୁଚ ନଖା
କିଅଗ୍ର କରିବ ଗୃହ

କଷ ମୁଁ ବୃଣିବ                    ଭୁଜା ପେ.ଘାରଚ
ସାଙ୍ଗ ହେବ କଏ ଅସ୍ତ ।

ଭଲ କଥାଟିଏ କହୁଲ ଏବା
ନାତ ତମ ସଙ୍ଗେ ହେବ ମୋ ଦେଖା
ତମଠାରୁ ଭୁଜା କଶିବ ଶୁଭ
ଅବଟରେ ପୂଜା କାଟିବ ମୁହିଁ ।
ଚନ୍ଦ୍ରୀକି ଯୋଗାଇ ଦେଶ

ଘରେ ବସି ମୁହିଁ                    ଧନ ଅରଜିବ
ଦେଶର ସେବା କରିବ ।

ସାନ କଥାଟିଏ କହୁଛ ମୁହିଁ
ଗୋଟି କେତେ କାଠ ବାକସ ନେଇ,
ଛାତ ଜାତ ମହୁମାଛି ପାଳିବ
ଲାଗିଥିବ ମହୁ ଗୃହ କରିବ ।
ନାନା ଜାତ ମହୁ କଣ୍ଡା

ତେଣୁ ସ୍ୱଦେଶରେ ଦେଶୀୟ ଶିଳ୍ପର
ଯତ୍ନ ତ ଲୋଡ଼ା ସବୁରି ।

ବଡ଼ ଦେଶୀୟଙ୍କୁ ନାହିଁ ତ ଧନ
ଗୋଟିଏ ପଥରେ ଅଛି ମୋ ମନ
ଲୁଚୁନ୍ ଦୁଃଖ ମୁହିଁ ଜାଳିବ
ଭଲ ଭଲ ଜାତ ବାଛ ଶୋଧିବ
ଗଣିକି ଗଢ଼ଣ ନେବ,
ବଜାର ଯୋଗରେ ଦେଖିବ ଲାଭଟି
ସୁଖେ ଧନ ଅର୍ଜିବ ।

ଯେଉଁ ବ୍ୟବସାୟ କରିବ ତୁମେ
ସତ୍ୟ ଅଛି ଶିକ୍ଷା ମୂଳଟି ତାର
ସ୍ୱାଧୀନ ଦେଶରେ ଅମୃତ ସବୁ
ସ୍ୱାଧୀନ ମନରେ କରମ କର
ଚିତ୍ତ ଭରେ ଶାନ୍ତି ମନ
ଅଳପ ଧନରେ ବ୍ୟବସାୟ ଯୋଗ
ହେବ ଧନେ ବଡ଼ ଜନ ।



# ଧାନଚାଷ

ଜ୍ୟେଷ୍ଠ ମାସ ଗଲେ ଆଷାଢ଼ ହେଲା
ଚଷାପୁଅ ହଳ ବିଲକୁ ନେଲା ।
ଲଙ୍ଗଳ ମୁଠାରେ ହାତ ପକାଇ
ହାମୁଡ଼ି ହଳଙ୍କୁ ଦେଲା ଅଡ଼ାଇ ।
କଅଁଶା ଚଷିଲା ଗମ୍ଭୀର କର
ଖତ୍ ବୁଣିଦେଲା ଚାଷକୁ ସାର ।
ଯୋଗଯୋଗ ଦେଖି ଅଙ୍କୁର ଦିନେ
ଘରୁ ବାହାରିଲା ହରଷ ମନେ ।
ମୁଣ୍ଡରେ ମୁଣ୍ଡାଇ ଧାନ ଗଉଣୀ
ବିଞ୍ଚି ବିଞ୍ଚି ଦେଲା ଚହଳ ବୁଣି ।
ଧାନ ଗଛ ଯହୁଁ ଅଣ୍ଟାଏ ହେଲା
ଲଙ୍ଗଳ ପୂରାଇ ବିହୁଡ଼ି ଦେଲା ।
ବାଛିଲା ବାଲୁଙ୍ଗା, ବାଛିଲା ଘାସ
ମୁଥା ବଉଁଶକୁ କରିଲା ନାଶ ।
ପାଚିଲା ଏଥର ଧାନ କିଆରି
ଦେଖି ପେଟ ତାର ଯାଉଛି ପୂରି ।
ନଇଁ ଦାଆ ଧରି ଚଷା ପୁଅଟି
ପାଚିଲା ଧାନକୁ ପକାଏ କାଟି ।
କଲେଇ ବାନ୍ଧି ସେ ଖଳାକୁ ନେଲା
ବେଙ୍ଗଳା ପକାଇ ଅମଳ କଲା ।
ଧାନକୁ ଗଦାଇ ଧରିଲା କୁଲା
ଉଡ଼ାଇଲା ଯେତେ ଅଗାଡ଼ ଥିଲା ।

ଶୁଖିଲ ଖପରେ ଭାଜି ଉଡ଼ନ
ଅଟେ ବାଙ୍କରୁଟେ ଓଳିଅମାନ ।
ଲୁହୁମ୍ବ ଖାଲର ମହା ମୁଖରେ
ଲୁଟି ଭାଣ୍ଡ୍ରି ଧାନ ଖାଏ ନସ୍ତ ଘରେ ।
ଲକ୍ଷ ପେଟ ପୋଷା ଅଟଇ ଟସା
ଦେଶ ବିଦେଶରେ ଭରେ ବେଉସା ।



## ମୁଦ୍ରା

ଟିପଥର ସାନ ପାତୁଲି,
ଚନ୍ଦ ସାତୁଲିରେ . ପଇସାଏ ହେବ
ପଇସାର ଦୁଇ ଅଧଲି ।

ଦୋହର ପଇସା ଦେଖିଲ
ଦୁଇ ପଇସାରେ ଗୋଟିଏ ଦୁଏ ସେ
ଚଉକୋଣିଅ ତା ଅକାର ।

ଭଡ଼ ବାଙ୍କ ବାଙ୍କ ଯାହାର
ଦୋହର ପଇଧା ଦୁଇଟି ମିଳିଲେ
ଅଣି ବୋଲି ନାମ ତାହାର ।

ଏଣିକି ପିଠିଲେ ନ ବାଡ଼େ,
ଦୁଇ ଅଣି ଦେଲେ ଟିକି ଦୋଅଣି ଟି
ଏଣ୍ଟୁ ହଣିବ ସହଜେ ।

ଏବେ ମିଳେ ଯେଉଁ ଦୋଅଣୀ,
ରୂପ ବୋଣିଆଁ ସେ ଦେଖିବାକୁ ବଡ଼
ନାହିଁ ତାର କିଛି ବାଜେଣି ।

ଦୁଇ ଦୋଅଣୀରେ ସିକିଟା,
ବଡ଼ ସାନ ଦୁଇ ପ୍ରକାରେ ମିଳଇ
ତୁମେ ତାହା ଦେଖି ନାହଁ କି ?

ନ ବାଜଇ ବଡ଼ ସିକିଟା,
ରୂପକଟେ ତ'ର ବଙ୍କା ଖାଞ୍ଜ ଥାଏ
ସାନଟି ଓଜନ ପାଇଁକ ।

ଦୁଇ ସୁକିଆରେ ଅଠଣୀ,
ଅଧୁଲି ବୋଲି ତ ତାହାଙ୍କୁ କହନ୍ତି
ନ ଚଳଲ ନ ଥିଲେ ବାଜେଣୀ ।

ଅଧୁଲିଟି ବଡ଼ ସୁବିଧା,
ଓଜନ ପାଇଁକି ଅଧ ଭରି ତାହା
ଗୋଟିଏ ଟଙ୍କାର ସେ ଅଧା ।

ଦୁଇ ଅଧୁଲିରେ ଟଙ୍କାଏ,
ଅଣ୍ଟାରେ ଥିଲେ ସେ ମନ ଖୁସି ଥାଏ
ନ ଥିଲେ ମୁହଁକୁ ବଙ୍କାଏ ।

# ଡାଲଖାଇ ଗୀତ

ଡାକିଲେ କାଉ କୁକୁଡ଼ା, ଡାକିଲେ କାଉ କୁକୁଡ଼ା,
ଛଠ ସାଜଭାଇ ବିଦେଶ ଯିବ, ମୋ ଡାଲଖାଇ ଲୋ
ମାଛ ତ ଫପିବ ଖରା—ଡାଲଖାଇ ଲୋ ।

ସାତ ସମୁଦ୍ରର ପାରି, ସାତ ସମୁଦ୍ରର ପାରି
ବୋଇତରେ ଯିବେ ଭାଇ ମୋହର ଡାଲଖାଇ ଲୋ
ଝଞ୍ଜାବତାସ ନ ଡର—ଡାଲଖାଇ ଲୋ ।

ଭାଇ ମୋର ସିହାଣିଆଁ, ଭାଇ ମୋର ସିହାଣିଆଁ
ଲଦି ନେଉଛନ୍ତି ବୋଇତ ଭରି, ମୋ ଡାଲଖାଇ ଲୋ
ସେ ଦେଶକୁ ଯାହା ନୂଆ—ଡାଲଖାଇ ଲୋ ।

ବିଦେଶେ ବଣିଜ ସାରି, ବିଦେଶେ ବଣିଜ ସାରି
ଭାଇ ମୋର ବେଗେ ଆସିବେ ଫେରି ମୋ ଡାଲଖାଇ ଲୋ
ଥିବି ବାଟ ଚାହିଁ ଘର—ଡାଲଖାଇ ଲୋ ।

ଆଣିବେ ନାନା ଦରବ, ଆଣିବେ ନାନା ଦରବ
ଆମ ଦେଶେ ଯାହା ମିଳଇ ନାହିଁ ମୋ ଡାଲଖାଇ ଲୋ
ଦେଖିଲେ ତାଟକା ହେବ—ଡାଲଖାଇ ଲୋ ।

ଶୁଭେ ଲେଉଟିବେ ଘରେ, ଶୁଭେ ଲେଉଟିବେ ଘରେ
ଭାଇମୁଣ୍ଡେ ଦେବି ଚନ୍ଦନ ଚିତା, ଡାଲଖାଇ ଲୋ
ନାଆଁ ରହିବେ ଦେଶରେ—ଡାଲଖାଇ ଲୋ ।

# ଡାଲଭଙ୍ଗା ଗୀତ

ନୂଆ ମେଘ ବରଷିଲା,
ଝଡ଼ ବୃଷ୍ଟି ଭାଇ ରେ ବଲ ପାଗିଲା
ବଲ ପାଚିଲେ ରେ, ହୃଦମୃତ୍ତେ ପାଣି ହେଲା । ୧ ।

ବେଳ ତ ଯିବ ବାହାର,
ଭୂମି ଚଷି ଦିଅରେ ଗମ୍ଭୀର କର
ଗମ୍ଭୀର କର ରେ, ଠାଣ ରେ ଲଙ୍ଗଳ ଧର । ୨ ।

ବାହାନକୁ ବୁଣିଦେଇ,
ବେଳ ଜାଣିକର ତୁ ପାଣି ମଡ଼ାଇ
ପାଣି ମଡ଼ାଇ ରେ କ୍ଷାର ଦିଅ ବଞ୍ଚାଇ । ୩ ।

ଫସଲ ପାଚିଲେ ଭାଇ,
ଗ୍ରୀଷ୍ମବେଳ ଦୁଃଖ ତୋ ଯିବ ଉଭାଇ
ଯିବ ଉଭାଇ ରେ ଷେତକୁ ଦେଲେ ଅନାଇଁ । ୪ ।

ଅଉ ତୁ ନ କର ହଠ,
ହସି ହସି ଭାଇ ରେ ଫସଲ କାଟ
ଫସଲ କାଟ ରେ, ଫିଟିବ ବଣିଜ ବାଟ । ୫ ।

ତୋ ଫସଲ ବଦଳାଇ,
ବରଷକ ସଉଦା କରୁଥା ଭାଇ
କରୁଥା ଭାଇ ରେ, ସୁଖେ ଦିନ ଯିବ ବହି । ୬ ।

ଅଲସୁଆ ଯେବେ ହେବୁ,
ଛାନ୍ଦ କାନ୍ଦ ସିନା ତୁ ଧନ ପାଇବୁ,
ଧନ ପାଇବୁରେ, ଉପାସ ଭୋକେ ମରିବୁ । ୭ ।

---

## ପୁଚଖେଳ ଗୀତ

ପୁଚି ଲୋ—ଯାଅ ଯାଅ ଘୁଞ୍ଚି ଲୋ ।
ଗହୁର ବିଲକୁ ଯାଉଛନ୍ତି ଲୋ, ଧାନ ମାଣେ ମାଣେ ଖାଉଛନ୍ତି ଲୋ,
ଗହୁର ବିଲରେ ଚୂଆ,
ଚୂଆ ଗୁଡ଼ବଡ଼େ ବୁଢ଼ା ସନ୍ଧଠାରେ ଚଢ଼େଇ ଦେଇଛନ୍ତି ଛୁଆ ।୧।

ପୁଚି ଲୋ—ଯାଅ ଯାଅ ଘୁଞ୍ଚି ଲୋ ।
ତୁ' ଥାଅ ମୁଁ ଯାଉଚି ଲୋ, ବୁଢ଼ା ମୂଳେ ଲୁଚି ରହୁଛନ୍ତି ଲୋ,
ଅଣିବ ଚଢ଼େଇ ଧରି,
ପାଟି କରନାହିଁ, ଶୁଣିଲେ ଚଢ଼େଇ ଉଡ଼ିଯିବ ପୁର୍ କରି । ୨।

ପୁଚି ଲୋ—ଯାଅ ଯାଅ ଘୁଞ୍ଚି ଲୋ ।
ଚଢ଼େଇ ଛୁଆକୁ ଧରନ୍ତି ଲୋ, ଚେଏଁ ଚେଏଁ ଚେଏଁ ଉଡ଼ୁଛନ୍ତି ଲୋ,
କ୍ରମ ଥଣ୍ଟିକିଏ ତାର,
ଲୁଲୁ ଲୁଲୁ କର ମୋ ଅଡ଼େ ଚାହିଁଛି, ତାକୁ ତ ଲାଗୁଛି ଡର । ୩

ପୁଚି ଲୋ—ଯାଅ ଯାଅ ଘୁଞ୍ଚି ଲୋ ।
ପଞ୍ଝୁରି ଗୋଟିଏ ଅଣିଛି ଲୋ, ଦୁଧଭାତ ଛଡେ ଦେଉଛି ଲୋ,

ନହୁଁରେ ଚଢ଼େଇ ନାହିଁ
ତୋ ମାଅ ଅସିବ ଚନ୍ଦ୍ରକୂଳ କର   ବସିଥାଅ ବାଟ ଗୃହିଁ । ୪ ।

ପୂରିଲେ—ଯାଅ ଯାଅ ଘୁଞ୍ଚି ଲେ ।
ଚଢ଼େଇ ମାଅଟି କାନ୍ଦୁଛି ଲେ, ଏ ଡାଳ ସେ ଡାଳ ଖୋଜୁଛି ଲେ,
ନେଏ ଲୋ ଚଢ଼େଇ ମାଅ,
ଛୁଅଟିକୁ ତୋର ସଙ୍ଗରେ ନେଇ ତୁ ବନସ୍ତକୁ ଉଡ଼ି ଯାଅ । ୫ ।

---

## ଡାକଘର

ଗୃହିଁ ଦେଖ ଦଶୁଅଛି ଏହୁ ଡାକଘର
କରୁଅଛି ଜଗତର ବହୁ ଉପକାର ।
ଝୁମୁକା ବଜାଇ ଦେଖ ଅସେ ହରକରା
ଡାକ ବହୁ ଅଣେ ତାର ନାହିଁ ଖରା ତରା ।
ଚିଠି ଦେବାର ବାକସ ଲେଖା ଅଛି ଯହିଁ
ତାହାର ଭିତରେ ଚିଠି ଦଅନ୍ତି ପକାଇ ।
ଘରେ ଥାଇ ଦୂରଦେଶେ ମିଳଇ ଖବର
ଡାକବାଲା ଚିଠି ବାଣ୍ଟିଦଏ ଘର ଘର ।
ଟଙ୍କା ଅବା ଚିଠି ଯାହା ଦେବ ଡାକଘରେ
ଯାହାଠାକୁ ଦଅ ତାକୁ ମିଳେ ବିଦେଶରେ
ଅମ୍ଭ ଉପକାର ଲାଗି ଏହୁ ଡାକଘର
ଦେଶରୁ ଦେଶକୁ ଦଏ ଖବର ଅନ୍ତର ।

---

# ଲୁଚକାଳି ଖେଳ

(ଫୁଲ ବଉଳ ବେଣୀ—ବୃତ୍ତେ)

ସୂର୍ଯ୍ୟର ପୂନେଇଁ ଜହ୍ନ ଗୋ !
ଫୁଲ ବଉଳ ବେଣୀ,
ଧୋବ ଫର ଫର କିରଣ ପଡ଼ୁଛି
ଫୁଲକୁ ଉଠଇ ମନ ଗୋ !
ଫୁଲ ବଉଳ ବେଣୀ । ୧ ।

ଆସ ଲୁଚକାଳି ଖେଳ ଗୋ !
ଫୁଲ ବଉଳ ବେଣୀ,
ସାଙ୍ଗ ହୋଇ ଆମେ ସମସ୍ତେ ଖେଳିବା
ନ କରିବା କଳି ଗୋଳ ଗୋ !
ଫୁଲ ବଉଳ ବେଣୀ । ୨ ।

ବୁଢ଼ିଆଣୀ ଜଣେ ହୁଅ ଗୋ !
ଫୁଲ ବଉଳ ବେଣୀ,
ଆଖି ମୋର ମୁଦ ଧରି ବସିବ ସେ
ସମସ୍ତେ ଲୁଚିବ ଯାଅ ଗୋ !
ଫୁଲ ବଉଳ ବେଣୀ । ୩ ।

ଲୁଚିଲେ ସମସ୍ତେ ଯାଇ ଗୋ !
ଫୁଲ ବଉଳ ବେଣୀ,
ବୁଢ଼ିଆଣୀ ମୋର ଆଖି ଛାଡ଼ି ଦେବ
ଖୋଜିବ ତୁମକୁ ଧାଇଁ ଗୋ !
ଫୁଲ ବଉଳ ବେଣୀ । ୪ ।

ବୁଢିଅଣୀ ଥିବ ବସି ଗୋ !
ଫୁଲ ବଉଳ ବେଣୀ,
ଜଣ ଜଣ କରି ଲୁଚିବା ଆମକୁ
ଛୁଇଁଥିବ ତାକୁ ଅସି ଗୋ !
ଫୁଲ ବଉଳ ବେଣୀ । ୫ ।

ଏତକ ବେଳରେ ମୁହିଁ ଗୋ !
ଫୁଲ ବଉଳ ବେଣୀ,
ଯାହାକୁ ପାରିବ ବାଟରେ ଛୁଇଁବ
ଜାଣି ଥାଅ ଚୋର ସେହୁ ଗୋ !
ଫୁଲ ବଉଳ ବେଣୀ । ୬ ।

ଜଣେ ଜଣେ ମୋହ ପର ଗୋ !
ଫୁଲ ବଉଳ ବେଣୀ,
ବୁଢିଅଣୀ ପାଖେ ଚୋର ହୋଇ ବସ
ପଢ଼ିବ ଭାଗ ସବୁରି ଗୋ !
ଫୁଲ ବଉଳ ବେଣୀ । ୭ ।

---

## ରାମ ବନବାସ

ଦଶରଥ ରଜାପୁଅ,
ପିତା ସ .ୟ ପାଳି ବନବାସ ଗଲେ
ଛାଡିଲେ ଝରଇ ଲୁହ ।

ସଙ୍ଗରେ ଲକ୍ଷ୍ମଣ ଭାଇ,
ସୀତା ଠାକୁରାଣୀ ବଚନ ବାଦ ଧଲେ
ମନା ତ ମାଣିଲେ ନାହିଁ ।

ରାଜ ପୁଅ ସୁକୁମାର,
ଚଉଦ ବରଷ ବନରେ ରହିବେ
କରମେ ଲେଖା ତାଙ୍କର ।

ରଥ ଚଢ଼ି ରାମ ଗଲେ,
ଟପ ଟପ ଘୋଡ଼ା— ଟାପୁ ପକାଇଲେ
ଚକ ଘିର ଘିର ବୁଲେ ।

ଥୋଡ଼େ ବାଟ ଯାହୁଁ ଗଲା,
ମଝିରେ ଗୋଟିଏ ନଈ ପଡ଼ିଲାରୁ
ରଥ ବାହୁଡ଼ି ଅଇଲା ।

ରଥରୁ ଓହ୍ଲାଇ ଗଲେ,
ନଈଟିକି ରାମ ଲକ୍ଷ୍ମଣ ସୀତା ସେ
ଡଙ୍ଗା ଚଢ଼ି ପାରହେଲେ ।

ନଈ ସେପାଖରେ ବଣ,
ନାନା ଜାତ ଗଛ ବୁଦାରେ ପୂରିଛି
ପଞ୍ଚବଟୀ ତାର ନାମ ।

ସେଠାରେ ଯାଇ ରହିଲେ,
ଖରା ବରଷାରୁ ବଞ୍ଚିବା ପାଇଁକି
କୁଡ଼ିଆ ଖଣ୍ଡିଏ କଲେ ।

ଲକ୍ଷ୍ମଣ ଅନ୍ତେ ଫଳ,
ହରଣ ଶିକାର ଶ୍ରୀରାମ କରନ୍ତ
ଧରି ହାତେ ଧନୁଶର ।

ସହୃ ମିଳେ ଯେଉଁ ଧନ,
ରଙ୍ଗ ବାଡ଼ି ସୀତା ଖରଣି ଦଅନ୍ତ
ଭଜହେଁ ହରଷ ମନ ।

---

## ଅସତ୍ ସଙ୍ଗ

ଗାଅଁ ମୁଣ୍ଡ ବୁଡ଼ା ବରଗଛ ତଳ ଛାଇ ।
ଖରା ବେଳେ ରହୁଥାନ୍ତି ଅନେକ ବଟୋଇ ।
କାକ ଅବା ହଂସ ଦୁହେଁ ସେ ଗଛେ ଥାଅନ୍ତି,
ଦ୍ଭୁତ ଦନରୁ ଡାଳେ ବସା ବାନ୍ଧିଛନ୍ତି ।
ଦିନେ ଖରାବେଳେ ଆସି ବାଣୁଆ ଗୋଟିଏ,
ଗଛତଳ ଛାଇ ଦେଖି ଶୋଇଲା ଟିକିଏ ।
ବଣ ଯାକ ବୁଲି ତାକୁ ଭାରି ବାଧିଥିଲା,
ପବନରେ ଗଛମୂଳେ ଢୁଳାଇ ପଡ଼ିଲା ।
ଅଳପ ବେଳରେ ତାକୁ ନିଦ ଘୋଟିଗଲା,
ଭୁଣ୍ଡ ମେଲି ସେ ବାଣୁଆଁ ଘୁଙ୍ଘୁଡ଼ି ମାରିଲା ।
ଯୋଗକୁ ସେ ଦିନ ହଂସ ଯାଇନାହିଁ ଚରି,
ପତର ଗହଳେ ଥାଏ ଚାଣ ଖରା ଡରି ।

ଝୋଲା ମଗ୍ନ ହୋଇ ଚାହୁଁ ଦୁଷ୍ଟ କାଉ ଆସି
ଏଡ଼କ ବେଳରେ ହଂସ ପାଖେ ଗଲା ବସି ।
ତଳେ ଶୋଇଛନ୍ତି ବାଣୁଆଁ ମହା ମଉଜରେ,
ଉଡ଼ିଗଲା ହଗିଦେଇ ତା ମୁହଁ ଉପରେ ।
ରାଗରେ ଉଠି ବାଣୁଆଁ ଗଛକୁ ଗୁହାଁଲ,
ହଂସଟିଏ ବସିଅଛନ୍ତି ଡାଳରେ ଦେଖିଲା ।
ହଂସ ହଗିଥିବ ବୋଲି ମନେ ମନେ ଭାଳି,
ବିନ୍ଧି ଦେଲା ଲକ୍ଷ୍ୟକରି ଧନୁଶର କାଢ଼ି ।
ଦୋଷ କଲା କାଉ ମିଛେ ହଂସ ପିନା ମଲା,
ଦୁଷ୍ଟ ସଙ୍ଗେ ବସାବାନ୍ଧି ଏ ଫଳ ପଇଲ ।

---

## କୃଷୀଗୀତ (ମାର୍ଚିଂ)

ସମସ୍ତେ—ଚାଲରେ ଚାଲ,
ଚାଲରେ ଚାଲ,        ବେଳ ଗଡ଼ିଯାଏ ଭାଇ । ୦ ।
ତୁମେ ଧରଥିବ କୋଦାଳ ଖଣ୍ଡିକ
ମୁଁ ଧରଥିବ କୋଡ଼,
ଝାଙ୍ଗର ପଡ଼ିଆ ଉଠିଆ କରିବା
ଅଣୁ ଏ ଗମ୍ଭୀର ତାଡ଼ ।

ସମସ୍ତେ—ଜାତି ଜାତି ଫୁଲ, ଫଳ, ମୂଳ ଫଳ
ହସି ଉଠିବ ଏ ଭୂଇଁ ।

ମିଳି ମିଶି ଆମେ କାମରେ ଲାଗିବା,
ବେଳ ଛାଣି ଗଛ ମୂଳେ ପାଣି ଦେବା,
ନାଅଣ୍ଟ ବୋଲି ଏ କଥା ନ ଶୁଣିବା
ବଳିବ ରେ ଆପେ ଖାଇ ।

ସମସ୍ତେ—ଚାଲରେ ଚାଲ ଭାଇ
ମେଘ ବରଷିଲା, ଭୂଇଁ ପାଗ ହେଲା
ଚାହିଁବାକୁ ଡର ନାହିଁ ।

---

## ସଂଖ୍ୟା ଗଣନା

ଦୁଇ ହେବ ଏକ ସଙ୍ଗେ ମିଶିବ ଯେବେ ଏକ
ଦୁଇ ପାଖରୁ ଏକ ଗଲେ ଯୋଉ ଏକ ସେଇ ଏକ ।
ଦୁଇ ସାଙ୍ଗରେ ଏକ ମିଶି ତିନି ହେଲ ଭାଇ
ତିନିରୁ ଏକ ଖସି ଗଲେ ଟସ ଯୋଉ ଦୁଇ ସେଇ ଦୁଇ ।
ତିନି ସାଥିକି ଏକ ମିଶି ଚାରି ହେଲା ଦେଖ
ଦୁଇ ଦୁଇ ପୁଣି ଚାରି ହୁଏ ଏତ ବଡ଼ କଉତୁକ ।
ଅଦ୍ଭୁତ ଦେଖ ହୋଇଲା ଚାରି ଚାରିଟି ଏକ ମିଶି
ତିନୋଟି ରହେ ସେଥିରୁ ଗଲେ ଗୋଟିଏ ଏକ ଖସି ।
ଚାରି ପାଖରୁ ଦୁଇ ନେଲେ ରହିବ ବାକି ଦୁଇ
ତିନୋଟି ଏକ ଚାରିରୁ ଗଲେ ଏକ ଯିବ ରହି ।

---

# ଗାଅ ଜନନୀର ଜୟ

ଗାଅ ଜନନୀର ଜୟ
ଓଡ଼ିଶା ଆମର ମାଆ ସ ସ ଭାଇ
ଆମର କାହାକୁ ଭୟ ? । ୦ ।

ଏ ଦେଶର ବୀର ସାଇକମାନେ ତ
ବଜାଇ ବିଜୟ ବାଜା
ଦେଶ ଦେଶ ଜିଣି ନାମ ରଖିଗଲେ,
ଅମର ସେ ବାସଅଙ୍କା
ଯେ ମାଟି ଉପରେ ଜନମ ତାଙ୍କର
ଆମେ ସେ ମାଟିର ପୁଅ ।

ଆମର ଦେଶର ବାଳକ ଧରମା
କୋଣାର୍କ ଗଲା ଗଢ଼ି
ବାପଅ ସ୍ୱଜତ ପ୍ରାଣ ଦେଲା ପଛେ
ଉଗାର ନ ଦେଲା ଗୁଡ଼,
ଆମେ ରେ ରଖିବା ଏ ଦେଶର ଟେକ
ଆଜଠାରୁ ସଜ ହୁଅ

---

ମୁଦ୍ରାକର—ଶ୍ରୀ ବନମାଳୀ ମିଶ୍ର, ନବଭାରତ ପ୍ରେସ,
କଟକ—୧୯୫୩—୧,୦୦୦